ଭକ୍ତକବି ବଳରାମ ଦାସଙ୍କ କୃତ

# ସପ୍ତାଙ୍ଗ ଯୋଗସାର

# ଟୀକା



ଶ୍ରୀ ରାଧାରମଣ ପୁସ୍ତକାଳୟ ଦ୍ୱାରା

ପ୍ରଥମବାର ପ୍ରକାଶିତ ।



ପ୍ରାପ୍ତିସ୍ଥାନ :—

ଶ୍ରୀରାଧାରମଣ-ପୁସ୍ତକାଳୟ

ବାଲୁବଜାର, କଟକ

ପୋ: ଚାନ୍ଦନୀଚୌକ

୧୯୬୦

୧୬୩୨

ମୂଲ୍ୟ ଟ ୦ /୬ ଛଅପଇସା ମାତ୍ର

ଭକ୍ତକବି ବଳରାମ ଦାସଙ୍କ କୃତ

# ସପ୍ତାଙ୍ଗ ଯୋଗସାର

# ଟୀକା



ଶ୍ରୀ ରାଧାରମଣ ପୁସ୍ତକାଳୟ ଦ୍ୱାରା

ପ୍ରଥମବାର ପ୍ରକାଶିତ ।




ପ୍ରାପ୍ତିସ୍ଥାନ :—

ଶ୍ରୀରାଧାରମଣ-ପୁସ୍ତକାଳୟ

ବାଲୁବଜାର, କଟକ

ପୋ: ଚାନ୍ଦନୀଚୌକ

୧୯୩୦

୧୯୩୨

ମୂଲ୍ୟ ଟ ୦ /୬          ଛଅପଇସା ମାତ୍ର

# ସପ୍ତାଙ୍ଗଯୋଗସାର ଟୀକା



ନମସ୍ତେ ଗୁରୁଦେବ ହେ ଯୋଗାଧିପୁରୁଷ । ଅନ୍ତର୍ଯ୍ୟାମି ନାଥ ତବ ମହିମା ଅଶେଷ । ୧ । ନମସ୍ତେ ଗୁରୁଦେବ ପରମଯୋଗେଶ୍ୱର । ସଚରା-ଚରାଦସ୍ଥମୀ ସକଳ ଗୋଚର । ୨ । ନମସ୍ତେ ଗୁରୁଦେବ ହେ ସର୍ବ-ଶକ୍ତି ବେତ୍ତା । ନମସ୍ତେ ଗୁରୁଦେବ ହେ ସର୍ବସୁଖଦାତା ।୩। ନମସ୍ତେ ଗୁରୁଦେବ ହେ ସର୍ବଧର୍ମସାର । ନମସ୍ତେ ଗୁରୁଦେବ ହେ ବ୍ରହ୍ମା ବିଷ୍ଣୁ ହର । ୪ । ନମସ୍ତେ ଗୁରୁଦେବ ହେ ଜ୍ଞାନକଳ୍ପତରୁ । ସର୍ବଧର୍ମଧାରଣା ଅଚଳ ମହାମେରୁ । ୫ । ନମସ୍ତେ ଗୁରୁଦେବ କରୁଣାମୟ ସିନ୍ଧୁ । ଅପଥିର ନାଶକ ତୁମ୍ଭେ ଜ୍ଞାନଇନ୍ଦୁ । ୬ । ନମସ୍ତେ ଗୁରୁଦେବ ପରମ ବ୍ରହ୍ମରଣି । ଗଲାରୁ ହରନ୍ତି ମୋର କାଳଦଣ୍ଡପାଶ । ୭ । କରନ୍ତ ସ୍ତୁତି ମଲ୍ଲିକା ଗୋରଖଙ୍କୁ ଗୃହି । ଦୁର୍ଲ୍ଲଭ କଥାଏ ସ୍ୱାମୀ ପଚାରିବି ମୁହିଁ । ୮ । ପ୍ରସନ୍ନ ହୋଇଣ ସ୍ୱାମୀ କହିବ ସେ କଥା । ତେବେ ସେ ଛିଡ଼ିବ ମୋର ଜନ୍ମ ମୃତ୍ୟୁ ବ୍ୟଥା । ୯ । ଚରଣେ ପ୍ରଣାମ ସ୍ୱାମୀ କହିବା ସେ ବିଧି । ମହାଯୋଗେଶ୍ୱର ତୁମ୍ଭେ ନାଶ ଯେ ବିଧି । ୧୦ । ଉପଦେଶ ସାର ଆଜ୍ଞା କର ଗୁରୁଦେବ । ଏ ଜୀବକୁ ଆତ୍ମା ଛାଡ଼ି ଯେମନ୍ତେ ନ ଯିବ । ୧୧ । ସେ ବାଟ ବୁଝାଇ ମୋତେ କହିବା ହେ ସ୍ୱାମି । ଆତ୍ମାରାମ ଜ୍ଞାନ ତୁମ୍ଭେ ସର୍ବ ଯୋଗଗାମୀ । ୧୨ । ହେ ସ୍ୱାମୀ ପରମଦୀକ୍ଷା ମୋତେ ତୁମ୍ଭେ କହ । ଯେମନ୍ତେ ହୋଇବ ସ୍ୱାମୀ ଅଜରାମର ଦେହ ।୧୩ ଯୋଗମାନଙ୍କର ରାଜା ଜ୍ଞାନଙ୍କର ସାର । ସେହି ଉପଦେଶ ଦେଇ ମୋ ପିଣ୍ଡଉଦ୍ଧାର । ୧୪ । ଜୀବ ପରମ ଶାଙ୍କୋଳ ଲେଖିଅଛ ଯାହା । ସଣ୍ଡସୁ ପିଠାଙ୍କ ମୋତେ ବତାଇବା ତାହା । ୧୫ । ଜୀବ ପରମ ସମ୍ପୃତ

କେମନ୍ତେ ହୋଇଲେ । ପ୍ରଥମେ କରୁପେ ସ୍ୱାମି କାହିଁ ସେ ରହିଲେ ॥
କେଉଣ ମାର୍ଗରେ ସ୍ୱାମି ସେ ଘଟେ ବିଶ୍ରାମ । କ ଜ୍ୟୋତି ପ୍ରକାଶ ସ୍ୱାମି
କେମନ୍ତେ ଉପାମ ।୧୭। ଶ୍ୱାସ ଦିବସ କେବେ ସେ କେଉଁଠାରେ ଥାନ୍ତି
କେଉଁଠାରୁ ଅଦି ସ୍ୱାମି ପ୍ରକାଶ ହୁଅନ୍ତି । ୧୮ । ସନ୍ଧ୍ୟା ପାହାନ୍ତି ଯେ
ସ୍ୱାମି କାହାକୁ ବୋଲିବା । ଏହିସବୁ କଥା ସ୍ୱାମି ମୋତେ ଅଜ୍ଞାହେବା ॥
ଅଦ୍ଭୁତ କଥାଏ ସ୍ୱାମି ପଶ୍ୱରିବ ଯାହା । ସ୍ୱେ ସ୍ୱାମି ପ୍ରସନ୍ନେ ମୋତେ
ବୁଝାଇବ ତାହା ।୨୦। ପିଣ୍ଡମଧ୍ୟେ ଅସ୍ମା ସ୍ୱାମି କେଉଁବନ୍ଧେରହି । ଯମର
ଏାସ ଯେ ମୋତେ ନ ଛୁଇବ ଯହିଁ । ୨୧ । ଯମକୁ ମୋହାଇ ମୋତେ
ସେ ଜ୍ଞାନ କହିବା । ଅଚେତନ ପିଣ୍ଡକୁ ଚେତନା କରାଇବା । ୨୨ ।
ଅଲେଖ ନିରଞ୍ଜନକୁ ଚିହ୍ନିବା କେମନ୍ତେ । ଏ ଦେହକୁ ଘେନି ସ୍ୱାମି
ରହିବ ଯେମନ୍ତେ । ୨୩ । କେବଣ ମାର୍ଗେ ମୁଁ ଯେ କେବଣ ଯୋଗ
କରି । କନ୍ଧ କେବଣ ପ୍ରକାରେ ମୃତ୍ୟୁ ହେବ ପାରି । ୨୪ । କେବଣ
ପ୍ରକାରେ ସ୍ୱାମି ଯମ ନୋହେ ଭେଟ । କେବଣ ପ୍ରକାରେ ରୋଗ ନ
ପଶଇ ଘଟ । ୨୫ । କେବଣ ପ୍ରକାରେ ସ୍ୱାମି କାଳକର୍ମ ଜିଣି ।
କେବଣ ପ୍ରକାରେ ସ୍ୱାମି ରହିବ ଜାଣି । ୨୬ । କେବଣ ବନ୍ଧେ
ତ୍ରିକୂଟ କୁଳୁପ ପିଟିବ । କେବଣ ବନ୍ଧରେ ହଂସ ସରୋବରେ ଥିବ ॥
କେବଣ ବନ୍ଧରେ ସ୍ୱାମି ଖେଳୁଥିବ ଭୃଙ୍ଗ । କେବଣବନ୍ଧେ ସ୍ୱାମି ଅଟଳ
ହେବ ଅଙ୍ଗ । ୨୮ । କେବଣ ବନ୍ଧରେ ଭୃଙ୍ଗ କମଳକୁ ଯିବ । କେବଣ
ବନ୍ଧେ କେଶର ଅମୃତ ଚୁମ୍ବିବ । ୨୯ । ବିସ୍ତାରି କରି ସ୍ୱାମି କହିବ ଏହି
ବିଧି । ଏ ଦେହ ଘେନି ସ୍ୱାମୀ ହୋଇବ ଯେସନେ ସିଦ୍ଧି । ୩୦ । ସାତ
ବାର ଯୋଗ ସ୍ୱାମି ଅଛଇ ଯେମନ୍ତେ । ଭେଦ ସୂତ୍ରେ ଭେଦ ସ୍ୱାମି
କହିଦେବ ମୋତେ । ୩୧ । କେଉଁ ଘରେ ଚନ୍ଦ୍ର ସ୍ୱାମି ସୂର୍ଯ୍ୟ କେଉଁ
ଘରେ । ଚନ୍ଦ୍ର ସୂର୍ଯ୍ୟ ବନ୍ଦୀ ଏଥି କେବଣ ପ୍ରକାରେ । ୩୨ । ସାତବାରେ
ଚନ୍ଦ୍ର ସୂର୍ଯ୍ୟ କେମନ୍ତେ ମିଶିଲେ । କେଉଁ ବାରକୁ ଘେନି କେ ଉଦୟ
ହୋଇଲେ । ୩୩ । ଜୀବ ପରମ ବିସ୍ତାରି ଅସ୍ମା ବାଧ୍ୟ ଯୋଗ । ସାତବାର

ଅଦ୍ଧ ସ୍ୱାମି ଚନ୍ଦ୍ର ସୂର୍ଯ୍ୟ ଭେଦ । ୩୪ । ଏହୁ ଘଟେ ସ୍ୱାମି ମୋତେ ପ୍ରତ୍ୟକ୍ଷେ କହିବ । ନମସ୍ତେ ନମସ୍ତେ ସ୍ୱାମୀ ନମୋ ଗୁରୁଦେବ । ୩୫ । ଏତେ ବୋଲି ମଚ୍ଛିନ୍ଦ୍ରା ଯେ ଗୁରୁପାଦ ଧରି । ଘଟ ଯୋଗ ସ୍ୱାମି ମୋତେ କହିବା ବିସ୍ତାରି । ୩୬ । ମଚ୍ଛିନ୍ଦ୍ରା ମୁଖୁଁ ଗୋରଖ ଏମନ୍ତ ଶୁଣିଲେ ପରମଯୋଗ ପୃଚ୍ଛାରେ ଶୁଣ ହୁ ବୋଇଲେ । ୩୭ । ଯାହା ତୁହି ପଚାରିଲୁ ପରମ ଗୁପତ । ସାତଜଣ ଜାଣି ଏହୁ ଯୋଗେ ହେଲେ ମୁକ୍ତ । ୩୮ । ସେ କେବଣ ଲୋକ ଶୁଣ କହିବା ତୋ ଆଗେ । ଦେହ ସେନ ପ୍ରତ୍ୟକ୍ଷେ ସେ ରହିଲେକ ଯୋଗେ । ୩୯ । ସଦଗୁରୁ କୃପା କଲେ ଜାଣଇଟି ପୁତା । ସେ ବ୍ରହ୍ମଯୋଗେ ମଣି ବୋଲାଇ ବ୍ରହ୍ମବେତ୍ତା । ୪୦ । ତୋ ଆଗେ ମଚ୍ଛିନ୍ଦ୍ରା ଶୁଣ କହିବା ବିସ୍ତାରି । ଜନ୍ମ ମୃତ୍ୟୁ ଘଟ ସୂକ୍ଷ୍ମ ପକାଅ ପାସୋରି । ୪୧ । ସାତ ବାର ଜନ ଯୋଗ ପଚାରିଲୁ ମୋତେ । ସଂଶୟ ଫିଟାଇ ପୁତା ବୁଝାଇବା ତୋତେ । ୪୨ । ସାତ ବାର ଅଦ୍ଧ-ଚନ୍ଦ୍ର ବୁନ୍ଦ ଭେଦ ଘଟେ । ଧାରଣା କହିବା ଶୁଣ ସାଧ ଯେଉଁ ବାଟେ । ଦେଲଭିତରେ ପୃଛା ରେ ପବନର ଠଣା । ଶବ୍ଦ ଯନ୍ତ୍ରି ପ୍ରାଣୀ ହୋଇଥାନ୍ତି ବଣା । ୪୪ । ଜାୟା ପ୍ରକୃତିଙ୍କ ଅଟେ ପବନ ପୁରୁଷ । ପୁରୁଷ ବିଯୋଗେ ପ୍ରକୃତିଏ ହୋନ୍ତି ନାଶ । ୪୫ । ପବନ ଯନ୍ତ୍ରିତ ପୁତା ଯନ୍ତ୍ର କଳେବର । ଏ ପିଣ୍ଡ ଅଟଇ ପୁତା ପବନ ଆକାର । ୪୬ । ଯନ୍ତ୍ରେ ସାର ହୋଇ ପୁତା ପବନ ରହିଛୁ । ଦଶପ୍ରକାରେ ପୁତାରେ ବିହାର କରୁଛୁ । ୪୭ । ଷାଠିଏ ସହସ୍ର ନାଡ଼ୀ ପ୍ରକୃତି ବିକାର । ତହିଁରୁ ବିନାଡ଼ୀ ମଧ୍ୟେ ଦଶନାଡ଼ୀ ସାର । ୪୮ । ସେ ଦଶନାଡ଼ୀରେ ପୁତା ଦଶ ସମୀରଣ । ତହିଁର ସାର ଏବେ କହିବା ତାହା ଶୁଣ । ୪୯ । ସେହୁ ପୁଣି ବିବିଧ ପ୍ରକାରରେ ହୋଇଲ । ନତେ୍ୟ ଅଗ୍ରେ କରି ଶୂନ୍ୟ ଭୁବନୁଁ ଖସିଲ । ୫୦ । ସୂର୍ଯ୍ୟ ଚନ୍ଦ୍ର କଳଙ୍କ ହୋଇଲେ ଶରୀରରେ । ସବୁ ଦେହେ ଅଛନ୍ତି ସେ କର୍ତ୍ତବ୍ୟଭେଦରେ । ୫୧ । ହଂସ ସୁହଂସ ପୁତା ପରମହଂସ ଜନ । ନିରଞ୍ଜନ ସ୍ୱରୂପ ଏ ପଞ୍ଚତତ୍ତ୍ୱ ସେନ । ୫୨ । ତାହା

ତୋତେ ମଲ୍ଲିକାରେ କହିବା ବୁଝାଇ । ମନ ପବନକୁ ତହିଁ ଥିବୁଟି
୫୨।୫୩। ପରମହଂସ ମହିମା ମନ ଦେଇ ଶୁଣ । ଯେତକ ଭେଦ ପୁଣ
କହିବା ତୋତେ ପୁଣ । ୫୪ । ପ୍ରଥମେ ପରମହଂସ ଶୂନ୍ୟ ଜନ୍ମ
ହେଲା । ସେ ପୁଣ ହଂସ ସୁହଂସ ବେନି ଜାତ କଲା । ୫୫। ଡାହାଣ
ଜନ୍ମିଲା ପୁତା ବୀର୍ଯ୍ୟରୂପେ ହଂସ । ବାମଭାଗ ରଜରୁ ଯେ ଜନ୍ମିଲା
ସୁହଂସ । ୫୬। ସତ୍ୱ ରଜ ତମ ଏ ତିନିହେଁ ଜାତ ହୋଇ । ସର୍ବମନ୍ତ୍ର
ଯନ୍ତ୍ର ନୂଆ ପାଞ୍ଚତନ୍ତ୍ର ସେହି । ୫୭ । ହଂସ ହେଲା ବୀର୍ଯ୍ୟ ଯେ ସୁହଂସ
ରଜ ହେଲା । ମଧ୍ୟରେ ପରମ ହଂସ ଖାଲକ ହୋଇଲା । ୫୮ ।
ସ୍ୱପନ ଜାଗ୍ରତ ପୁତା ନିଦ୍ରା ଏହୁ କରି । ଏ ତିନି ଅବସ୍ଥା ପୁତାଦେହକୁ
ଅଟେବାରି । ୫୯। ଜାଗ୍ରତ ଅବସ୍ଥା ପୁତା ଧରୁଥାଇ ହଂସ । ନିଦ୍ରାର
ଅବସ୍ଥା ପୁତା ଧରଇ ସୁହଂସ ।୬୦। ପରମହଂସ ଧରଇ ସ୍ୱପ୍ନର
ଅବସ୍ଥା । ଦେହ ଆତ୍ମା ବୁଝାଇଣ କହିବା ବ୍ୟବସ୍ଥା ।୬୧। ଗତାଗତ
ପ୍ରକୃତି ହୁଅନ୍ତି ଦେହ ଘେନ । ଷଷ୍ଠ ଜାଗ୍ରତ ଅଲକ୍ଷ ଅବସ୍ଥା ଏ
ଘେନ ।୬୨। ଏତିନି ପ୍ରଳୟେ ପୁତା ଲଭିବୁ ବିଶ୍ରାମ । ତାହାକୁଟି
ବୋଲି ପୁତା ନିରଞ୍ଜନ ଧାମ ।୬୩। କେବଳ ଲକ୍ଷ ପୁତାରେ
ଜାଣନ୍ତି ଶଙ୍କର । ସେ ସ୍ଥାନକୁ ଜାଣି ପୁତା ହୋଇଲେ ଅମର ।୬୪।
ମୁଁ ପୁଣି ପାଇଲି ପୁତା ସଦ୍‌ଗୁରୁ ପଚାରି । ମୁନିଏ କହିଲେ ମୋତେ
ଏ ଯୋଗ ବିଚାରି ।୬୫। ପୂର୍ବେ ଏ ଯୋଗ ପୁତା ରେ ଅଦ ଗର୍ଭେ
ଥିଲା । ଅନାଦି ଜନନୀ ପୁତା ଅଦକୁ ପୁଛିଲା ।୬୬। ଯୋଗ ଗର୍ଭ
ବୋଲି ତାର ନିଜ ନାମ ଖ୍ୟାତ । ତାହାକୁଟି ବୋଲି ପୁତା ବ୍ରହ୍ମଜ୍ଞାନ
ତତ୍ୱ ।୬୭। ସପତାଙ୍ଗ ମହାରୁଦ୍ର ଅଷ୍ଟାଙ୍ଗ ଧାରଣା । ତାହାକୁ ସେ
ଯୋଗ ପୂର୍ବେ ହୋଇଥିଲା ବଣା ।୬୮। ଅନାଦିଠାରୁ ରୁଦ୍ର ପାଇଲେ
ଉପଦେଶ । ତେବେଟି କାଟିଲେ ପୁତା କାଳଚକ୍ର ପାଶ । ୬୯ ।
ଲୋମାଷ ନାମେ ପୁତା ଅଛଇ ଏକ ଋଷି । ମହାଦେବର ଶିଷ୍ୟ ଏ
ଯୋଗମାର୍ଗେ ବସି ।୭୦। ସେ ପୁଣି ପଚାରିଲେ ଶଙ୍କରଙ୍କ ଅଗ୍ରତେ ।

ଏ ଦେହ ଯେଜ ସ୍ୱାମି ମୁଁ ରହିବ ଯେମନ୍ତେ । ୭୧ । ସେ ଯୋଗ କହ ସ୍ୱାମି ସଂଶୟ ମୋର ଛେଦ । ତେବେ ସ୍ୱାମି ଯେମନ୍ତେ ମୋର ନୋହୁ ମୃତ୍ୟୁ ଭେଦ ।୭୨। ଯୋଗାରୁଢ ରୁଦ୍ର କହ ଦେଲେ ଲୋମାଷକୁ । ସେ ଯୋଗ ଜାଣିଲେ ବ୍ରହ୍ମାଣ୍ଡର ଈଶ୍ୱରକୁ ।୭୩। କୋଟି ବ୍ରହ୍ମାଣ୍ଡ ପ୍ରଳୟେ ଲୋମ ନ ଟଳଇ । ଲୋମାଷ ନାମ ପୁଚ୍ଛାରେ ଚଉଣ୍ଡ ସେ ବୋଲଇ । ୭୪ । ପ୍ରଚଣ୍ଡ ନାମେ ପୁତା ଥିଲାକ ତାକ ଗୋଟି । ତାହାର ପୁଦ ପ୍ରତାପରେ ଭୁଷଣ୍ଡ ନାମଟି ।୭୫। ସେ ପୁଣି ଶିଷ୍ୟ ଭାବରେ ଲୋମାଷଙ୍କୁ ପୁଚ୍ଛି । ସେ ଯୋଗ ଜାଣି ପ୍ରତାପରେ ଅମର ହୋଇଛି ।୭୬। କୋଟି ଯୁଗ ଗଲା ବହି ରହିଅଛି କାୟ । ଜାଗ୍ରତ ଯୋଗ ଅଛି ନ ଲାଗେ ମୃତ୍ୟୁ ଭୟ ।୭୭। ବଶିଷ୍ଠ ନାମରେ ଋଷି ରଘୁବଂଶ ଗୁରୁ । ସେ ପୁଣ ପାଇଲା ତହୁ ଭୁଷଣ୍ଡ ମୁଖରୁ । ୭୮ । ସେହି ଯୋଗ ପାଇଁ ଯୋଗ ବଶିଷ୍ଠ ବୋଲାଇ । ଶ୍ରୀରାମଚନ୍ଦ୍ରଙ୍କୁ ପୁଣ କହିଲେ ବୁଝାଇ ।୭୯। ଶିଷ୍ୟଭାବେ ରାମ ତାଙ୍କୁ ପଚାରିଲେ ଯହୁଁ । ପ୍ରସନ୍ନ ହୋଇ ବ୍ରହ୍ମର୍ଷି କହିଲେକ ତହୁଁ ।୮୦ । ହନୁମାନ ବୀର ମୃତା ଶ୍ରୀରାମ ବିଶ୍ୱାସ । ପ୍ରାଣୀ ହିତକାରୀ ସେ ଶ୍ରୀରାମଙ୍କର ଦାସ ।୮୧। ସେ ପୁଣ ପଚାରିଲେ ଶ୍ରୀରାମ ମୁଖ ଚାହିଁ । ତାହାକୁ ଏ ଯୋଗ ଯେ କହିଲେ ସୀତାସାଇଁ ।୮୨। ଶୁଣ ହନୁମାନ ଏ ପରମ ଯୋଗ ସାର । ଯେବଣ ଯୋଗ ଜାଣି ଅମର ହେଲେ ହର ।୮୩ । ଏହି ଦେହ ଯେବଣ ରୂ ଯୁଗେ ଯୁଗେ ଥିବୁ । ଜୀବ ପରମ ଚନ୍ଦ୍ର ସୂର୍ଯ୍ୟଙ୍କୁ ରୂ ଜାଣିବୁ ।୮୪। ଚନ୍ଦ୍ର ସୂର୍ଯ୍ୟ ଯୋଗ ମୋତେ କହିଲେ ବଶିଷ୍ଠ । ଯୋଗମାନଙ୍କରେ ଯେ ଅଟଇ ଯୋଗଶ୍ରେଷ୍ଠ ।୮୫। ପ୍ରଥମ ଯୋଗ ଏ ଚନ୍ଦ୍ର ସୂର୍ଯ୍ୟ ନାଡ଼ୀ କହି । ସାତବାର ଗଣି ଦୂଦ ପଡ଼ୁଅଛି ଯହିଁ ।୮୬। ଇଡ଼ା ପିଙ୍ଗଳା ପୁତା ସୁଷୁମ୍ନା ତିନ । ଉଦୟ ହୋଇ ଅଛନ୍ତି ସାତବାର ଦିନ ।୮୭। ପିଙ୍ଗଳା ଉଦୟେ ରବି ମଙ୍ଗଳ ଶନିରୁ । ଗୁରୁବାର ଜଗି ଦିବାକରଙ୍କୁ ଦେଖିବୁ । ୮୮ । ଇଡ଼ା ଉଦୟ

ସେ ମମଡ୍ରିଲ ସୁମର । ତିନିବାର ଲଗି ପୁଚ୍ଛା ଭେଟ ନିଶାଙ୍କର । ୮୯ ।
ଏ ବେନି ସଙ୍ଗମ ପୁଚ୍ଛା ସୁଷୁମ୍ନ ଭେଟ । ଶୂନ୍ୟ ମେରୁ ବୋଲି ତାକୁ
ଅଚଳ କହିଛ ।୯୦। ତଥି ଉପରେ ପୁଚ୍ଛାରେ ବ୍ରହ୍ମରନ୍ଧ୍ରଦ୍ୱାର ।
ଛଳ ଶ୍ରୀପା ପ୍ରାପ୍ତେ ପୁଚ୍ଛା କପାଟ ସେଠାର । ୯୧ । ତାଲୁ ନାସିକା
ମଧ୍ୟରେ ଦେଖୁ କରି ଜାଣ । ନିରନ୍ତରେ ସେହିଠାରୁ ଝରୁଅଛି ପ୍ରାଣ ।
ସେଠାରେ କାଳ ପୁଚ୍ଛାରେ ବଜ୍ରମ ଅର୍ଗଳ । ଯମରାଜା ପୁରେ କାଳ-
ଚକ୍ରର ମଣ୍ଡଳୀ ।୯୩। ସେ ଦ୍ୱାରେ କାଳ ପୁଚ୍ଛାରେ ବନ୍ଦକରି ରଖ ।
ବ୍ରହ୍ମ କପାଟ ଫିଟାଇ ଅଲେଖକୁ ଦେଖ । ୯୪ । ଯେବେଟି ଯମର
ବାସ ନ ଲାଗିବ ତୋତେ । ଆତ୍ମାକୁ ମିଶାଅ ନେଇ ଅଲେଖ ସଙ୍ଗତେ
କାଳକୁ ଜିଣି ପୃଷ୍ଠ ଧରି ପାରୁ ଯେବେ । ଅଯପୂ ପିଣ୍ଡରେ ବଜ୍ର
ହୋଇପାର ତେବେ ।୯୬। ପବନ ଶାଙ୍କୋଳ ନେଇ ପଞ୍ଚାଇବୁ
ଛନ୍ଦ । ଓଢ଼ଟ ମୁଦ୍ରାଣେ ଯମେ ପଞ୍ଚାଇବୁ ବାନ୍ଧ । ୯୭ । ବ୍ରହ୍ମ
ସମାଧିରେ ଧରି ବ୍ରହ୍ମଅଗ୍ନି ଜାଳ । ବ୍ରହ୍ମଅଗ୍ନି ତେଜରେ ଦହନ
ହେଉ କାଳ ।୯୮। କାଳଅଗ୍ନି ଲିଭୁ ପୁଚ୍ଛା ବ୍ରହ୍ମଅଗ୍ନି ତେଜେ ।
ଯେବେକି ଘଟରେ ଆତ୍ମା କରିଥିବ ବଜେ । ୯୯ । ଆତ୍ମା ସିଦ୍ଧି
ପାଇଲେ ଘଟର ସିଦ୍ଧି ପାଇ । ଉଲଟି ରଖ ପବନ ଚକ୍ରକୁ ମଣ୍ଡାଇ ।
ମୃତ୍ୟୁ ଦେବତାକୁ ପୃଚ୍ଛା ତେବେ ପାରୁ ଜିଣି । ଖପରେ ଲାଗିବା
ତେବେ ସହଜେ ଉଜାଣି ।୧୦୧। ଏ ପିଣ୍ଡକୁ ନିରନ୍ତରେ ଘୋଟିଅଛି
କାଳ । ଦିବା ନିଶି ଜାଗି ପୃଚ୍ଛା ଯୋଗ ଧରି ଖେଳ । ୧୦୨।
ଶ୍ରୀ ଇନ୍ଦ୍ର ନାଥ ମୋତେ ଉପଦେଶ ଦେଲେ । ସାତବାର ସପ୍ତାଙ୍ଗ
ଅଷ୍ଟା ଯୋଗ ଦେଲେ ।୧୦୩। ଚନ୍ଦ୍ର ଅଙ୍ଗେ ଥିବାର ଏ ଷୋଳ-
କଳା ଚନ୍ଦ୍ର । ସୂର୍ଯ୍ୟ ଅଙ୍ଗେ ବାରକଳା ଶୁକ୍ରବାର ଘେନ ।୧୦୪। ରବି
ଦିବସ ମିଶି ଯେ ସାତବାର ହୋଇ । ଏ ଯୋଗ ବଶିଷ୍ଠ ଋଷି ଛନ୍ତି
ମୋତେ କହି ।୧୦୫। ଶନି ରବି ଗୁରୁ ଯେ ମଙ୍ଗଳ ଅବଧାରି ।
ସୂର୍ଯ୍ୟଅଙ୍ଗେ ଯୋଗାଙ୍ଗ ଦିବସ ଜାତ କରି ।୧୦୬। ବାରୁଣୀଯୋଗ

ଏହୁଟି ଦକ୍ଷିଣ ସମୀରେ । ଏ ଶୁକ୍ରବାରରେ ପୁତା ଜାଣ ସୂର୍ଯ୍ୟ ଘରେ ॥ ସୋମ ଶୁକ୍ର ବୁଧକୁ ତୁ ବାମସ୍ୱରେ ରଖ । ଚନ୍ଦ୍ର ମିଶି ନାଡ଼ୀ ଏ ଉଦୟ ହେବ ଦେଖ ।୧୦୮। ଏହୁ ଛନିବାର ବାମସ୍ୱରରେ ସମୀର । ଜାଗ୍ରତେ ଲାଗିଲେ ଚେଷ୍ଟ ପାଇବୁ ତୁ ଥିର । ୧୦୯ । ତେବେଟି କାଳଚକ୍ରରେ ନୋହିବୁ ତୁ ଭେଦ । ପରମ ଯୋଗ ସାଧି ତୁ ଦେଖ ଜଣବଦ । ୧୦୦ । ଏହୁ ଯୋଗ ଧର ମୁହଁ ଲଙ୍କା କଲ କ୍ଷୟ । କାଳ ମୃତ୍ୟୁ ନ ପଶଇ ଅକ୍ରାମର କାୟ ॥ ଶ୍ରୀରାମଙ୍କ ଆଜ୍ଞା ପାଇ ହନୁମାନ ବୀର । ଏ ଯୋଗ ଧରି ପୃଥ୍ୱୀରେ ହୋଇଲେ ଅମର ॥ ଏ ସାତ ଜାଣ ପୃଥ୍ୱୀରେ ଉପଦେଶ ପାଇ । ଏ ଜ୍ଞାନ ତୋତେ ପୁତାରେ କହିବା ବୁଝାଇ ॥ ଅତି ଗୁପତ କଥା ଏ ଦୂର୍ଲଭ ବାରତା । ସେ କଥା ଜାଣିଲେ ପୁତା ହେବୁ ଅମୃଙ୍ଗତା ॥ ଉପଦେଶ ସାର ଯେ କହିଲି ସିଦ୍ଧିଯୋଗ । କେତେକେତେ ଘଟେ ତୋହର ନ ଫଟିବ ରୋଗ । ପୂର୍ବେଟି ଗୋରୀନ୍ଦ୍ର ନାଥ କହିଛନ୍ତି ମୋତେ । ଯେ କଥା ଶୁଣ ପୁତା ରେକହୁଅଛୁ ତୋତେ ॥ ଅଦ ଅନାଦ ଯୋଗୀ ଏ ସବୁ ମୋର ଗୁରୁ । ସବୁ ଯୋଗ ଧାରଣା ଅଚଳ ମହାମେରୁ ॥ ସେ ମୋତେ କହିଛନ୍ତି ପରମ ଗୋପ୍ୟ କରି । ଯେଣୁ ପଶୁରିଲୁ ପୁତା ବେନପାଦ ଧରି ॥ ଶୁଣ ପୁତା ପଶୁରିଲୁ ହେଉଁ ବେନ ଯୋଗ । ସଂଶୟ ଫିଟାଇଣ କହିବା ତୋର ଅଗ ॥ ପ୍ରସନ୍ନ ହୋଇଣ ଗୁରୁ କହିଲେ ସେ କଥା । ତେବେ ସେ ଖଣ୍ଡିଲା ମୋର ଜନ୍ମ ମୃତ୍ୟୁ ବ୍ୟଥା ॥ ସେହିଠାରୁ ସପ୍ତ ଭୂମି ସପ୍ତଖଣ୍ଡ ଜ୍ଞାନ । ସପ୍ତଦ୍ୱାର ବାରୁଣୀ ସାରୁକ୍ୟ ମୁକ୍ତ ଧାମ । ଯୋଗମାନଙ୍କର ରାଜା ରାଜଯୋଗ କହି । ବ୍ରହ୍ମଜ୍ଞାନ ବୋଲି ପୁତା ବ୍ରହ୍ମକୁ ସାଧଇ ॥ ଯୋଗ ଅଙ୍ଗେ ଯୋଗ ପୁତା ଭୋଗ ଅଙ୍ଗେ ଜାଣି । ତେବେ ସେ ରହିବ ପୁତା ସହଜେ ଉଜାଣି ॥ ଯୁଗେ ଯୁଗେ ପୃଥ୍ୱୀରେ ଭୋଗାଉଁ କରି ବେଗ । ତେବେ ସେ ଜାଣିବୁ ପୁତା ଚଉଷଠି ରୋଗ । ରୋଗ ନ ପଶିଲେ ଯେ କାଳକୁ ଜିଣିପାରୁ । ଫୁଟିବ ଛପନ କୋଟି ଷୋଡଶ ଡମ୍ବରୁ ॥ ମେରୁ ଶିଖର

ପୁତ୍ରାରେ ଶୂନ୍ୟେ ଫୁଟି ବାଟ । ଚନ୍ଦ୍ର ସୂର୍ଯ୍ୟ ଭୁବନେ ପବନ ଯାଇଁ ଭେଟି ॥ ଛିନଭିନ ସୂର୍ଯ୍ୟ ପୁତ୍ରା ଭଜ ଗୁରୁଭଗ । ପ୍ରକୃତି ପୁରୁଷ ଯୋଗେ ବୋଲନ୍ତି ସପ୍ତାଙ୍ଗ ॥ ସପ୍ତାଙ୍ଗରେ ଥାଇ ଚନ୍ଦ୍ର ସୂର୍ଯ୍ୟ ଗତାଗତ । ଅଷ୍ଟାଙ୍ଗକୁ ଗଲେ ଚନ୍ଦ୍ର ସୂର୍ଯ୍ୟ ହୋଏ ହତ ॥ ଏଥି ସାତବାର ପୁତ୍ରା ସପ୍ତାଙ୍ଗ ହୁଅଇ । ଶୁଣ ହେ ମଲ୍ଲିକାନାଥ କହୁବା ବୁଝାଇ ॥ ଏବେ ସାତବାର ପୁତ୍ରା ଧାରଣାରେ ସାଧ । ବିନା ଧାରଣାରେ ପୁତ୍ରା ପିଣ୍ଡ ନୋହେ ସିଦ୍ଧି ॥ ବିନା ଯୋଗରେ ପୁତ୍ରା ନ ରହେ କଦା ପିଣ୍ଡ । ସମୀର ସାଧନ ଦ୍ୱାରା ଯମେ ଦିଅ ଦଣ୍ଡ ॥ ବିନା ପ୍ରାଣାୟାମେ ପୁତ୍ରା ସିଦ୍ଧି ନୋହେ କାୟା । କାୟା ଅସିଦ୍ଧିରେ ପୁତ୍ରା ଘୋଟେ କାଳମାୟା ॥ କାଳମାୟା ଛିଣ୍ଡେ ପୁତ୍ରା କର କି ବିଶ୍ରାମ । ସୁଷୁମ୍ନେ ପ୍ରବେଶ କର ଅଭେଦର ଧାମ । କାୟା ନଗ୍ର ଛିଣ୍ଡେ ପୁତ୍ରା ବଜାଅ ନିଶାଣ । ନିଶାଣ ଶବଦ ଶୁଣି ଡରୁ କାଳରାଣ ॥ ଦନା ନଦି ଜାଗ ପୁତ୍ରା ଅନାହତ ଧ୍ୱନ । ଯମ ପଳାଇବ ପେ ଭ୍ରାନ୍ତିକ ସଙ୍ଗେ ସେନ । ନିର୍ଭୟ ହୋଇବୁ ନଗ୍ରେ କରିଥାଅ ବାସ । ଏବେ ମଲ୍ଲିକାନାଥ କହିଲେ ଉପଦେଶ ॥ ଚେତନା ଜଗାଇ ନଗ୍ର କର କହୁଥାଇ ॥ ତେବେସିଟି ନଗ୍ରରେ ପୁତ୍ରା ନ ପଶିବ କାଳ ॥ ଯୋଗ କମାଇଲେ ପୁତ୍ରା ଯୋଗୀ ସେ ବୋଲାଇ ॥ କାଳକୁ ଜିଣିଲେ ପିଣ୍ଡେ ବ୍ୟାଧି ନ ପଶଇ ॥ କାଳବ୍ୟାଧି ନ ପଶିବ ଯେବଣହିଁ ପଥେ । ଶୁଣ ରେ ମଲ୍ଲିକାନାଥ କହେଁ ତୋଅଗ୍ରତେ ॥ ଦଶଦ୍ୱାରକୁ ପୁତ୍ରାରେ ନିରୋଧ ପବନ । ଦଶଧ୍ୱନି ନାଦେ ପୁତ୍ରା ଜଳୁ ହୁତାଶନ । ରସ ଜାଣ୍ଡ ସିଝୁ ପୁତ୍ରା ଦୂରୁ ଖଞ୍ଜ କାଳ । ତେବେ ସେ ପିଣ୍ଡକୁ ପୁତ୍ରା ନ ଛୁଇଁବ କାଳ । ଶୁଖିଲା କାଠ ଯେସନେ ଘୁଣ ଖାଇ ନ ଥାଇ । ଲୁହାକୁ ଯେସନେ ପୁତ୍ରା କଳଙ୍କ ଲାଗଇ ॥ ବ୍ୟାଧିରୂପ ହୋଇ କାଳରଙ୍କ ପାଶେ ଘଟେ । ଅଚେତନପିଣ୍ଡ ପୁତ୍ରା ମରଇ ନିକଟେ ॥ ଚେତନାପିଣ୍ଡ ପୁତ୍ରାରେ ସର୍ବକାଳେ ଥାଇ । ଅବିନାଶ ପିଣ୍ଡ ପୁତ୍ରା ବିନାଶ ନୁହଇ ॥ ଯେଉଁ ଯୋଗବଳେ ପୁତ୍ରା

ପିଣ୍ଡ ରଖି ପାର । ମନ ପବନକୁ ଯେବେ ପାରୁ ଏକକରି ॥ ନାଦବିନ୍ଦୁ ଠାରୁ ଯେବେ ପଡିଯିବ ବନ୍ଧ । ଯୋଗେଶ୍ୱର ହେତୁ ପୁତା ଅଜାମର ବନ୍ଧ ॥ ରସକୁ ରଖି ପୁତା ରସାଣି ଦଅ ପାଟ । ଗୋଟି ହୋଇବ ପୁତାରେ ଅଲେଖ ଅରୂପ । ନରଦେହ ପୁତା ସର୍ବଙ୍କଠାରୁ ସାର । କାଳଦଣ୍ଡି ନ ଲଭି ହୁଅନ୍ତି ନାଗେଶର ॥ ଜ୍ଞାନବନ୍ଧେ ବାନ୍ଧ ଯେବେ ପବନ ଉଜାଣି । ବିନାବନ୍ଧରେ ପୁତାରେ ନ ରହଇ ପାଣି ॥ ପ୍ରବନ୍ଧ ଆସନ ଦେଇ ଶୀତଳ ଛନ୍ଦରେ । ଊର୍ଦ୍ଧ୍ୱମୁଖେ ଲେଉଟି ରହିବୁ ତୁ ବନ୍ଧରେ ॥ ସର୍ବଙ୍ଗ ରୁନ୍ଧିଲେ ପୁତା ପବନ ଲାଗିବ । ତେବେ ସେ ରସ ପୁତାରେ ଜ୍ୟୋତି ପାଲଟିବ ॥ ସିଦ୍ଧ ସାଧକ ପୁତାରେ ବେନିଅଙ୍ଗ କହି । ବିନା ସାଧକ ଅଙ୍ଗରେ ସିଦ୍ଧଅଙ୍ଗ ନୋହି ॥ ଚନ୍ଦ୍ର ସୂର୍ଯ୍ୟ ନାଡ଼ୀ ପୁତା ବେନିସିଦ୍ଧ ଅଙ୍ଗ । ତାହାକୁ ସେ ବୋଲି ପୁତା ଚନ୍ଦ୍ରସୂର୍ଯ୍ୟ ଯୋଗ ॥ ଚନ୍ଦ୍ରସୂର୍ଯ୍ୟ ମଧ୍ୟେ ପୁତା ଯେବଣ ପବନ । ତାହାକୁ ସେ ବୋଲି ପୁତା ଅମନଭବନ ॥ ବେନିପାଖୁଡାକୁ ସେ ଯେ କରଇ ପ୍ରମାଣ । ଅନୁଭବ ଅସ୍ଥାରେ ତୁ ହେତୁକରି ଜାଣ ॥ ବାମପାର୍ଶ୍ୱେ ଚନ୍ଦ୍ର ଦକ୍ଷିଣରେ ସୂର୍ଯ୍ୟ ରହି । ଚନ୍ଦ୍ରସୂର୍ଯ୍ୟ ମଧ୍ୟେ ପୁତା ଶମ୍ଭୁନାଳ ଥାଇ ॥ ହଂସବୋଲ କରି ପୁତା ସେ ଯେବଣ ଜନ । ଦବହଂସ ଉଦମ୍ଭେ ନାମ ତାହାର ପବନ ॥ ସୁହଂସ ବୋଲି ପୁତାରେ ଯେବଣ ମରୁତ । ସ୍ୱରରେ ଉଦସ୍ତୁ ନାମ ତାର ଚନ୍ଦ୍ରମନ୍ତ୍ର । ପରମହଂସ ବୋଲିବା ଯେବଣ ପବନ । ନିଜଳା ସଂଯମ ତାକୁ ସନ୍ଧ୍ୟାବୋଲି ଜାଣ ॥ ହଂସ ସୁହଂସ ଦୁହିଙ୍କି ସେହି ଜାତ କଲା । ମଧ୍ୟରେ ପରମହଂସ ଗୁପ୍ତେ ରହିଲା । ନିତତ୍ତ୍ୱ ଭେଦେ ଓଁକାର ତଳେ ମହାମନ୍ତ୍ର । ସ୍ତୁତି ଭେଦରେଟି ବୋଲଇ ଘଟପନ୍ଥା । ଏହିଘଟେ ଜନ୍ମଭେଦ ତୋତେ କହି ଦେବା । ତେବେ ପାଇବୁ ତୁ ପୁତା ନିରଞ୍ଜନ ସେବା । ୧୬୨ । ସ୍ଥୂଳଘଟ ବିରଘଟ ମହାଘଟ ଛନ । ଆତ୍ମା ମୂଳକଳ୍ପ ଏହି ମୃତ୍ୟୁଞ୍ଜୀବନୀ । ୧୬୩ । ଏହି ମନ୍ତ୍ର ଧରି ହରି କାଳକର୍ମ ଜିଣି । ଘଟଯନ୍ତ୍ରେ ଧରି ପୁତା ରଖିଲେ ଉଜାଣି ॥

ତେବେନ ପଢରେ ହୋଇ ପବନକୁ ବାନ୍ଧ । ପବନ ତୋଟି ଭଢରେ ମନ କଲେ ବନ୍ଧ । ୧୬୫ । ମନପବନ ରୁଦ୍ର ଯେ ଏକ ସ୍ଥିର କଲେ । ନାଦ ବିନ୍ଦୁ ବାନ୍ଧି ଗଣ୍ଠି ସହଜେ ଗଢିଲେ ॥ ଦଶନାଡ଼ୀରେ ପୁଣ ଦଶଗୋଟି ପବନ । ସର୍ବଘଟେ ଗୁରୁ ଏହି ବୋଲଇ ଜୀବନ ॥ ଦଶପବନ ପୁଣରେ ନାମ ହୋଏ ଦଶ । ଗୋଟି ଗୋଟି ତା ଅଗତେ କରିବା ପ୍ରକାଶ ॥ ଇଅଁଳା ପିଅଁଳା ପୁଣ ସୁଷୁମ୍ନା ନାଡ଼ୀ । ଦଶପବନ ପୁଣରେ କହିବେବା ଫେଡ଼ି ॥ ପ୍ରାଣ ଅପାନ ଯେ ବ୍ୟାନ ଉଦାନ ସମାନ । ଏ ପଞ୍ଚପବନ ପୁଣ ଅନ୍ତରବଧାନ ॥ ନାଗକୁମାରକୁ ଲକ୍ଷ ଦେବଦତ୍ତ ଯେନ । ଧନଞ୍ଜୟ ଅଦ ପୁଣ ଏ ପଞ୍ଚପବନ ॥ ନିଦ୍ରାର ଘର ଏହି କାଳକୁ ଜଗିଥିବୁ । ଅଧାର ଭୋଜନ ଏଥେଁ କେବେଁ ନ କରିବୁ ॥ ସ୍ୱଳ୍ପଭୋଜନ ପୁଣରେ ଦେହେ ହୋଏ ବଶ । ଅବଶେ ନିଦ୍ରା ପୁଣରେ କାଳ କରେ ଗ୍ରାସ ॥ ହଂସସୁହଂସ ପୁଣରେ ବେନିଗୋଟିପକ୍ଷୀ । ସର୍ବଦେହେବ୍ୟାପୀପୁଣପ୍ରାଣ ଅଛିରକ୍ଷି ॥ ପରମହଂସ ଏ ବୋଲ ମହାଶୂନ୍ୟ କହୁ । ହଂସସୁହଂସ ପୁଣରେ ଜାଣକର ଯେହୁ ॥ ହଂସର ମୁଖ ପୁଣରେ ପଶ୍ଚିମକୁ ଜାଣ । ଡାହାଣ ବର୍ତ୍ତିକ ହୋଇଛୁ ଉତ୍ତରସ୍ୟଣ ॥ ଏହି ଯୋଗ ଧରି ସ୍ନାନ ଭୋଜନ କରିବୁ ॥ ତେବେ ଏ ଦେହରୁ ବ୍ୟାଧି ସର୍ବ ଉଜୁଡ଼ିବୁ ॥ ସୂର୍ଯ୍ୟଘରେ ପଶି ପୁଣ ଭୋଜନ କୁ କର । ତେବେ ନ ଯିବୁ ପୁଣରେ ଯମରାଜା ପୁର ॥ ସୁହଂସ ମୁଖ ପୁଣରେ ସର୍ବଦିଗେ ଜାଣ । ବାମାବର୍ତ୍ତିକ ପୁଣରେ ହୋଇଛି ଦକ୍ଷିଣ ॥ ଏହି ଯୋଗ ଧରି ଚନ୍ଦ୍ର ଘରେ ନିଦ୍ରାକର । ତେବେ ନ ଯିବୁ ପୁଣରେ ଯମରାଜାପୁର ॥ ଏହି ଯୋଗକୁ ଧରି ଅହାର ନିଦ୍ରା ଜାଗ । ତେବେ ସିଦ୍ଧି ପୁଣରେ ହୋଇବ ଯୋଗ ଭୋଗ ॥ ଏ ବାଟେ ପୁଣ ଆହାର ନିଦ୍ରା ସାଧ କର । କାଳ ବ୍ୟାଧିକ ପୁଣରେ କେବେହେଁ ନ ଡର ॥ ଡାହାଣରେ କାଳ ପଶେ ବାମେ ପଶେ ରୋଗ । ଏ ଦୁଇଅଙ୍ଗ ପୁଣରେ ଦୃଢ଼କରି ଜାଗ ॥ ଏମନ୍ତ ଚନ୍ଦ୍ରସୂର୍ଯ୍ୟ ପୁଣ ବିଶ୍ୱାସ କରିବା ।

ପିଣ୍ଡ ବ୍ରହ୍ମାଣ୍ଡରେ ପୂଜା ଘଟାଇ କହିବା । ସୂର୍ଯ୍ୟମଣି ବୋଲି ପଞ୍ଚପବନକୁ ଧରି । ପଞ୍ଚକଳା ଧରି ସେ ଦିବସ ଜାତକରି । ଚନ୍ଦ୍ରମଣି ହୋଇ ପଞ୍ଚପବନ ହୋଇଲେ । ପଞ୍ଚକାଳ ଧରି ସେ ରାତ୍ରିକୁ ଜାତକଲେ । ଏ ଦଶ ପବନ ପୂଜା ହୁଇ ହୁଇ ହୋଇ । ପୃଥ୍ୱୀ ଅପ ତେଜ ବାୟୁ ଆକାଶ ବୋଲଇ ॥ ସପ୍ତବାର ମଧ୍ୟେ ଥାଇ ସପ୍ତ ଆବରଣ । ସପ୍ତାଙ୍ଗ ଯୋଗରେ କହିବା ଏବେ ଶୁଣ ॥ ଜ୍ଞାନ ସପ୍ତ ଭୂମି ବୋଲି ସପ୍ତାଙ୍ଗରେ କହି । ସପ୍ତାଙ୍ଗ ଭୂମି ଯେ ସାତ ବାରବାଟି ବୋଲଇ ॥ ଜନ୍ମ ମୃତ୍ୟୁ ସ୍ଥିତି ତିନି ଜାଣ ଏଥେ ପଣି । ଚନ୍ଦ୍ର ସୂର୍ଯ୍ୟ ଅଙ୍ଗେ ପୂଜ ପାରୁ ଯେବେ ମିଶି ॥ ଚନ୍ଦ୍ର ଅଙ୍ଗେ ଚନ୍ଦ୍ର ପୂଜା ଜଗିକରି ଦେଖ । ସୂର୍ଯ୍ୟ ଅଙ୍ଗେ ଭାଗ ପୂଜା ରହି ସୂର୍ଯ୍ୟ ପାଖ । ଚନ୍ଦ୍ର ସୂର୍ଯ୍ୟ ଯୋଗେ ପୂଜା ସାତ ବାର ହୋଇ । ପଞ୍ଚଭୂତ ଆତ୍ମା ପୂଜା ଧରିଛନ୍ତି ସେହି । ପଞ୍ଚକଳା ସ୍ତ୍ରୀ ପୁରୁଷ ଯେ ପଞ୍ଚକଳା ସପ୍ତବାର ମିଶି ପୂଜା ହୋଇଛନ୍ତି ମେଳ । ତିନିବାର ଚନ୍ଦ୍ର ପୂଜା ଚାରିବାର ସୂର୍ଯ୍ୟ । ସାତବାର ବୁଝାଇ କହିବା ତୋତେ ବୁଝି ॥ ବାମରେ ଚନ୍ଦ୍ର ପୂଜାରେ ତିନିବାର ଘେନ । ଷାଠିଏଣ୍ଟା ପରିକ୍ରମା କରେ ମେଦନୀ ॥ ଦକ୍ଷିଣେ ସୂର୍ଯ୍ୟ ପୂଜାରେ ଚାରି ବାର ଧରି । ଷାଠିଏଣ୍ଟା ପୂଜାରେ ପରିକ୍ରମ କରି ॥ ଷାଠିଏ ଦଣ୍ଡ ପୂଜାରେ ଚନ୍ଦ୍ର ସୂର୍ଯ୍ୟ ଯୋଗ । ପିଣ୍ଡ ବ୍ରହ୍ମାଣ୍ଡକୁ ପୂଜା କରୁଛନ୍ତି ଲୋକ ॥ ଏବେ ଯୋଗ ଭୋଗ ପୂଜା କହେ ଶୁଣ ତୋତେ । ଯାହା ତୁ ମଲ୍ଲିକାନାଥ ପଚାରିଲୁ ମତେ । ରବିବାରରେ ପୂଜାରେ ରବିଚନ୍ଦ୍ର ଗୋଳ । ସେ ଦିନ ଉଜାଣି ପୂଜା ଇଅଁଳା ପିଅଁଳା । ଚାରିପାଖୁ ତା ଉଇଁଲେ ଜାଗିଥିବୁ ରାତି । ସେ ଦିନ ନ ଯିବୁ ପୂଜା ସ୍ତ୍ରୀସଙ୍ଗର କତି ମୂଳ କମଳକୁ ଚାପି ଧରିବୁ ଔଳଟି । କାଳଚକ୍ରକୁ ପୂଜାରେ ପକାଇବୁ କାଟି ॥ ସୋମବାରରେ ପୂଜାରେ କୁ ସୋମ ସୂର୍ଯ୍ୟ ଦୁଇ । ଅଧାରଚନ୍ଦ୍ରକୁ ପୂଜାକରୁଥିବୁ ତୁହି ॥ ତିନିତିନିଦଣ୍ଡ ଯେ ତହୁଁ ଉଜାଣିରଖିବୁ ଚନ୍ଦ୍ରକଳା ଧରି ପୂଜା ସୂର୍ଯ୍ୟକୁ ଜାଗିବୁ । ଷୋଡଶକଳାକୁ ଉଜାଣି ଚନ୍ଦ୍ରକଳା ସଙ୍ଗେ

ସପ୍ତଘଡ଼ି ପରେ ରହିବରପ୍ରିଶୀଷଙ୍ଗେ । ସୁଷୁମ୍ନା ଭେଦ କାଉଁ ଶୀମଣ୍ଡଳେ ବାଟ । ଏତେ ଲକ୍ଷଣେ ପୂଜାରେ ଯମ ନୋହେ ଭେଟ । ମଙ୍ଗଳବାର ପୂଜାରେ ମଙ୍ଗ ଧର ଟାଣି । କିରୁଟ ସ୍ଥାନକୁ ପୂଜା ବଳାଅ ଉଜାଣି । ୨୦୬ । କାଳକୁ ଖଣ୍ଡି ପୂଜାରେ ବ୍ରହ୍ମଅଗ୍ନି ଜାଳ । ସେହି ଧନ ନ କରିବୁ ତ୍ରିଶୀ ସଙ୍ଗେ କେଳ । ନ ଛୁଇଁବୁ ତ୍ରିଶୀ ଅଙ୍ଗ ନ କରିବୁ ରଙ୍ଗ । ଏତେ ଲକ୍ଷଣେ ପୂଜା ନ ଯିବୁ ଯମ କଢ । ବୁଧବାର ପୂଜାରେ ରୁ ନାଶୀ ସଙ୍ଗେ ମେଳା । ଉଥି ଧରି ଭେଦବୁ ତ୍ରିଶୀଙ୍କ ଚନ୍ଦ୍ରକଳା ॥ ଚନ୍ଦ୍ରକଳା ଧରି ପୂଜା ଧ୍ୟାନମାନ ଭେଦ । କାଳଚକ୍ର ବ୍ୟୁହକୁ ତୁ ପକାଇବୁ ଛେଦ । ଦ୍ୱାଦଶ ଦଳରେ ପୂଜା ମନକୁ ନିରୋଧ । ମରିଯାଉ ମହାମୀନ ଛିଡ଼ିଯାଉ ବନ୍ଧ ॥ ବାରକଳା ଧରି ପୂଜା ଷୋଳକଳା ସାଧ । ଏତେ ଲକ୍ଷଣେ ପୂଜାରେ ଅଜାମର କନ୍ଧ ଗୁରୁବାରେ ପୂଜାରେ ଗୁରୁ ବଚନ ଧର । ନ କରିବୁ ରଢ ପୂଜା ନ ଛୁଇଁବୁ ତ୍ରିଶୀ ॥ ଗୁରୁକୁ ସୁମରି ପୂଜା ଗୁରୁ ପାଦେ ମଢ । ଏତେ ଲକ୍ଷଣେ ଯମ ନ ଯିବ ତୋର କଢ । ଶୁକ୍ରବାରରେ ପୂଜାରେ ଯୋଗ ଚନ୍ଦ୍ର ଚଳ । ବାମ ଦକ୍ଷିଣେ ପୂଜାରେ ପବନ ଶାନ୍ଧୋଳ ॥ ଦକ୍ଷିଣରେ ପବନ ବହିବ ପେଟଭବେଳେ । ଭ୍ରମଣ କର ପୂଜାରେ ତ୍ରିଶୀଙ୍କର ମେଳେ । ସୁଷୁମ୍ନା ଭେଦ କାଉଁଶୀ ମଣ୍ଡଳେ ବାଟ । ଏତେ ଲକ୍ଷଣେ ପୂଜାରେ ଯମ ନୋହେ ଭେଟ ॥ ଶନିବାରେ ପୂଜାରେ ହୋଇବୁ ଏକମନ । ଅବାଇ ମଣ୍ଡଳେ ପୂଜା ବାହିବୁ ପବନ । ହଂଷ, ବେନି ଦଳ ମଧ୍ୟେ ପୂଜାଅ ଉମିଶୀ । ଗୋଲ୍ହାଟରେ ପୂଜାରେ ପଡ଼ିଯାଇ ହୁର । ମରିଯାଉ ମହାମୀନ ଲୁଗିଯାଉ ବନ୍ଧ । ଏତେ ଲକ୍ଷଣେ ପୂଜାରେ ଅଜାମର କନ୍ଧ ॥ ଏ ସାତବାର ବହିଲୁ ସଦ୍‌ଗୁରୁ ପ୍ରସଙ୍ଗେ । ଗୁରୁଭକ୍ତ ବିନୁ ଏହା ନ ଜାଣନ୍ତି ଅନେ । କେବଣ ଉଥିରେ ପୂଜା ଚନ୍ଦ୍ର ସୂର୍ଯ୍ୟ ଠଣା । ଏ ଭେଦ ଜାଣିଲେ ଜୋନ୍ଧ ଦିବ୍ୟଙ୍କ ଲକ୍ଷଣା । ସେ ଉଥି କହିବା ପୂଜା ଶୁଣ ମନ ଦେଇ । ତୋହର

ଦେହରେ ପୁଣ ସାକ୍ଷୀ ଦେବା କହ ॥ ଗଙ୍ଗା ଯମୁନା ପୁଣାରେ ସରସ୍ୱତୀ ତକ । ଇଅଁଳା ପିଅଁଳା ସୁଷୁମ୍ନା ଯେଣ । ମେରୁ ଫୁଟିଣ ପୁଣାରେ ବାଙ୍କୁନାଳ ଭେଦ । ଲେଉଟି ଉଜାଣ ପୁଣ ବହେଛନ୍ତି ନଦୀ ପିଅଁଳା ଯମୁନା ତୀର୍ଥ ଚନ୍ଦ୍ର ଅଙ୍ଗ ହୋଇ । ଇଅଁଳା ଗଙ୍ଗାତୀର୍ଥ ଯେ ସୂର୍ଯ୍ୟ ଅଙ୍ଗେ ବହ ॥ ମଧ୍ୟରେ ସୁଷୁମ୍ନା ପୁଣ ତୀର୍ଥ ସରସ୍ୱତୀ । ସେ ତୀର୍ଥ ସେବିଲେ ନ ଦଣ୍ଡଇ ଜନ୍ମଯନ୍ତ ॥ ଉଦୟାଚଳ ଅସ୍ତାଚଳରେ ଶୂନ୍ୟାଚଳ । ଅନନ୍ତ କୋଟି ତୀର୍ଥର ସ୍ନାନ ସେହୁ ମୂଳ ॥ ଜନ୍ମ ମୃତ୍ୟୁ ନୋହିବ ଏ ତୀର୍ଥେ ସ୍ନାନ କର । ପୁନରପି ନ ଦେଖିବୁ ଯମରାଜାପୁର ଯୋଗ ଜ୍ଞାନ କହିଲି ବିଦ୍ୟାଦି ଭେଦ ଯେତେକ । ଯୋଗ ଜାଗ ଦେହ ଯେକ ରହ ତୁ ନିଷ୍ଟେକ । ଜାଗି ପାରିଲେ ପୁଣାରେ କାଳ ମୃତ୍ୟୁ ହର ଅଜାଗ୍ରତ ହେଲେ ପୁଣ କାଳ ମୁଖେ ମର । ସାତବାର ଜ୍ଞାନ ଭେଦ ଉପଦେଶ ସାର । ଗୁପତେ କହିଲୁ ପୁଣ ପ୍ରକଟ ନ କର । ଶଚୀନନ୍ଦ-ନାଥ ଯେ ମୋତେ ଉପଦେଶ କଲେ । ପରମ ଗୁପତ ବୋଲି ଜ୍ଞାନ ହେଳୁ ଦେଲେ । ଗୁପ୍ତମାନଙ୍କରେ ପରମଗୁପତ ଏହ । ପାର୍ବତୀନାଥଙ୍କ ବିନୁ ନ ଜାଣନ୍ତି କେହ ॥ ଅନେକ ଯୋଗ ଅବା ଅନେକ ତୀର୍ଥ ଅବା । ନାନାଦି ଦେବତାଙ୍କୁ ଯେ କରୁଥାନ୍ତି ସେବା ॥ ଅନେକ ମନ୍ତ୍ର ଜପିଣ ପୂଜା କର୍ମ କରେ । ନାନା କର୍ମ କରି ଭ୍ରମି ସଂସାରୁ ନ ତରେ ॥ ଯୋଗିମାନେ ଯୋଗ ସାଧି କମାଉଣ ଥାନ୍ତି । ଅସ୍ଥା ଯୋଗ ନ ପାଇ ସେ ବ୍ୟର୍ଥେ ମରନ୍ତି ॥ ଜନ୍ମ ମୃତ୍ୟୁ ଲଭନ୍ତି ସେ ଗତାଗତ ପଥେ । ଅଜ୍ଞାନେ କାୟାକୁ କ୍ଲେଶ ଦଅନ୍ତି ଅମିତେ ॥ ମରିବା ନ ଜାଣେ ପୁଣ ଜୀଇବା ନ ଜାଣେ । ଦାମ୍ଭିକ ପଣେ ମୁଣାରେ ମୁଖରେ ବଖାଣେ ॥ ଏହ ସାତବାର ଜ୍ଞାନ ନ ଜାଣନ୍ତି ଯେହୁ । କୋଟି ଜନ୍ମାନ୍ତରେ ପୁଣ ଯୋଗୀ ନୋହେ ସେହୁ ॥ ରବି ଶଶି ଗୁରୁ ପୃଥ୍ୱୀ ମଣ୍ଡଳ ଜାହାଣେ । ପ୍ରକଟେ ଜାଣିବୁ ପୁଣ ଉଦୟ ପ୍ରମାଣେ ॥ ସୋମ ଶୁକ୍ର ବୁଧ ପୁଣ ବାମରେ ଉଦୟ । ତେବେ ସର୍ବ ଦିଗକୁ କରିଯାରୁ ଜୟ ॥ ଯେ ଯାତ୍ରା

ଘରେ ଯେବେ ତାହାକୁ ଜଣା ଯାଇ । ସେ ଦନ ଜାଣିବୁ ପୁତା ସର୍ବ ସିଦ୍ଧି ହୋଇ ॥ ସ୍ୱଘରକୁ ଛାଡ଼ ଯେବେ ପର ଘରେ ଥିବ । ସେ ଦନ ଅନୁକୂଳ କେବେହେଁ ନ କରିବ ॥ ବିପରୀତ ବୋଲି ପୁତା ଜାଣ ସେ ଦନର । ଯେଣେ ଗଲେ ଜୟ ନାହିଁ କହିଲି ନିଜର ॥ ଏହି ସାତବାର ବିପରୀତ ହୁଏ ଯେବେ । ଅଷ୍ଟଦନେ ପୁତାରେ ମୃତ୍ୟୁ ହୁଏ ତେବେ ॥ ସପ୍ତାଙ୍ଗରେଥାଇ ପୁତା ଅଷ୍ଟାଙ୍ଗରେଯାଇ । ନିଦ୍ରା କ ଗଲେ ପୁତାରେ ଜାଣିଥାଅ ତୁହି ॥ ଅଷ୍ଟାଙ୍ଗ ହେଲେ ପୁତା ଅବଶ୍ୟ ପୂରେ କାଳ । ସପତାଙ୍ଗେ ଥାଇ ପୁତା ବ୍ରହ୍ମ ଅଗ୍ନି ଜାଳ ॥ ବ୍ରହ୍ମ ଅଗ୍ନି ଭିତରରେ ଚନ୍ଦ୍ର ସୂର୍ଯ୍ୟ ଦହି ॥ ଭସ୍ମ ଭିତରୁ ଅଙ୍ଗ ଆଣିବୁ ପାଲଟାଇ ॥ ଯେବେ ଭସ୍ମ ଭିତରୁ ତୁ ଉଠିବୁ ପୁତା ॥ ଯୋଗୀନ୍ଦ୍ରମାନଙ୍କ ମଧ୍ୟେ ହେବୁ ବ୍ରହ୍ମବେତ୍ତା ॥ ଏହି ଜ୍ଞାନ ପାଇ ଶିବ ଭସ୍ମାଙ୍କୁର ହେଲେ । ତେଣୁକରି ସଦାଶିବ ପ୍ରଳୟ ନୋହିଲେ ॥ ପରମ ଯୋଗ ତତ୍ତ୍ୱ ଏ ବ୍ରହ୍ମଜ୍ଞାନ ଭେଦ । ଜୀବନ ମୁକ୍ତ ହୁଅଇ ଯୋଗେଶ୍ୱର ପଦ ॥ ନିର୍ବାଣ ପଦ ଲଭିବୁ ଦେଖି ନିରଞ୍ଜନ । ବ୍ରହ୍ମାଣ୍ଡ ଖପର ପରେ ଭିଡ଼ିବୁ ଆସନ ପରମ ସାର ଅମୃତ ପାନ କରୁଥିବୁ । ପଞ୍ଚଦଶ ଭୁବନେ ତୁ ବ୍ରହ୍ମାଙ୍କୁ ଭେଟିବୁ । ଚତୁର୍ଦ୍ଦଶ ଭୁବନରେ ବ୍ରହ୍ମାଣ୍ଡ ଘଟନା । ଧର୍ମ ଯୋଗମାନଙ୍କ ଭଜନ ଏଥି ବିନା ॥ ଜନ୍ମ ମୃତ୍ୟୁ ହେଉଥାନ୍ତି କର୍ମ ଯୋଗ ଦେନ । କର୍ମ ଫଳ ଧରି ଜନ୍ମ ହୋନ୍ତି ନାନା ଯୋନି ॥ ପଞ୍ଚଦଶ ଭୁବନରେ ଜ୍ଞାନୀ ଯୋଗୀ ଠଣା । ଅନାହତ ଘରେ ଶୂନ୍ୟେ ବାଜଇ ବାଜଣା । ଏବେ ମଚ୍ଛିନ୍ଦ୍ରନାଥ କହିଲେ ଉପଦେଶ । ଷଡ଼ ପବନ ହଜାଇ ସେ ସ୍ଥାନରେ ପଶ ॥ ଏ ଉପଦେଶ ପ୍ରକଟ ନ କରିବୁ କାହିଁ । ପର ଶିଷ୍ୟେ ନ ଦେବୁଟି କହିଲି ବୁଝାଇ । ପ୍ରକଟକଲେ ପୁତା ତୁ ଗୁରୁଦ୍ରୋହୀ ହେବୁ । ଅକାଳମରଣ ପୁତା ଅବଶ୍ୟ ପାଇବୁ ॥ ଗୁରୁ ଅସନ୍ତୋଷେ ପୁତା ସବୁ ହୋଏ ନାଶ । ଅବଶ୍ୟ ତାହାକୁ ଲାଗଇ କାଳପାଶ ॥ ମୋହର ଇଷ୍ଟ ପିତାରେ ଏ ପରମ ଜ୍ଞାନ । ଯୋଗେଶ୍ୱରମାନଙ୍କ

ପରମ ଗଣ୍ଡି ଧନ ॥ ଗୁପତ କରି ପୁଞ୍ଜାରେ ଦୁଦେ ଥିବୁ ଧରି । ଜନ୍ମ ମୃତ୍ୟୁ ଗତାଗତ ପଥ ନ ପାଶୋରି । ଗୋରକ୍ଷନାଥ କହିଲେ ମଚ୍ଛିନ୍ଦ୍ରା ଶୁଣିଲେ । ଗୁରୁ ଶିଷ୍ୟ ପରମ ଅଶ୍ରାରେ ବହିଲେ । ସପତାଙ୍ଗ ଯୋଗ ସର୍ବ ଯୋଗ ମଧ୍ୟେ ସାର । କହେ ବଳରାମ ଦାସ ଚନ୍ଦ୍ର ରମାବର । ୨୬୫ ।

ଇତି ଶ୍ରୀ ବ୍ରହ୍ମବିଦ୍ୟାୟାଂ ପରମହଂସ ପଦ୍ଧତାୟାଂ ଯୋଗଶାସ୍ତ୍ରେ ସପ୍ତାଙ୍ଗଯୋଗସାର ଟୀକା ସମ୍ପୂର୍ଣ୍ଣ ।




କଟକ ସତ୍ୟବାଦୀ ପ୍ରେସରେ ଶ୍ରୀ ରାଧାନାଥ ରଥଙ୍କ ଦ୍ୱାରା ମୁଦ୍ରିତ ୧୯୩୨

ନୂତନ !    ନୂତନ !!    ନୂତନ !!!

# ସଙ୍ଗୀତ ବୈଜୟନ୍ତୀମାଳା

ପ୍ରକାଶିତ ହୋଇଅଛି ।    ସୁଲଭ ମୂଲ୍ୟ ୦ ୮

ଭକ୍ତକବି ଗୌରଚରଣ ଅଧିକାରୀ କାହାର ନିକଟରେ ଅବିଦିତ ନୁହନ୍ତି । ସେହି ମହାତ୍ମାଙ୍କ ରଚିତ ଶ୍ରୀକୃଷ୍ଣଲୀଳା ପୁସ୍ତକ ଖଣ୍ଡି ସୁଲଳିତ ମନୋମୁଗ୍ଧକର ରାଗରାଗିଣୀରେ ଲିଖିତ ହୋଇ ଜନସାଧାରଣରେ ଅତି ଆଦରଣୀୟ ଗ୍ରନ୍ଥ ହୋଇଅଛି । ଉପରୋକ୍ତ ସଙ୍ଗୀତର ଗୀତଗୁଡ଼ିକ ସେହି ମହାତ୍ମାଙ୍କ ସ୍ୱରଚିତ । ଭାଷା ସରଳ, ଭାବ ସହଜ, ଗୀତଗୁଡ଼ିକ ସୁମଧୁର ଚଳିତ ରାଗରେ ରଚିତ । ରାଧା-କୃଷ୍ଣଙ୍କର ଅତୁଳନୀୟ ପ୍ରେମର ମାଧୁରୀପୂର୍ଣ୍ଣ ଗୀତଗୁଡ଼ିକ ଶୁଣିଲେ ବା ପଢ଼ିଲେ କଣ୍ଠସ୍ଥ ନ କରି ଛାଡ଼ି ପାରିବେ ନାହିଁ । ଏହା ଯେଉଁଜନ୍ତୁ ଅପ୍ରକାଶିତ ଥିଲା । ଆମ୍ଭେ ବହୁ ଅର୍ଥ ବ୍ୟୟ କରି ଏହା ଜନସାଧାରଣରେ ପ୍ରକାଶ କଲୁଁ । ସହୃଦୟ ସଙ୍ଗୀତ-ପାଠକବୃନ୍ଦ ଏଥିରେ ସନ୍ତୁଷ୍ଟି ଲାଭ କଲେ, ଶ୍ରମ ସାର୍ଥକ ମଣିବୁଁ । ଇତି ।

ନିବେଦକ

ଶ୍ରୀ ଶ୍ରୀ ର.ଗର୍ଗବଟ

ପ୍ରାପ୍ତିସ୍ଥାନ :—

**ଶ୍ରୀରାଧାରମଣ ପୁସ୍ତକାଳୟ**

ପୋଃ ଅ. ଗୃଧନାଟଗୀକ, କଟକ ।